# ନୀତିସାରଚୌତିଶା ॥

ରାଗ ବଙ୍ଗଳାଶ୍ରୀ ।

କପଟ ଯାକର ହୋଇଛୁ ଅକର ନାରୀମାନଙ୍କ ହୃଦୟ ।
କେବେ ତାଙ୍କ ଠାରେ ବିଶ୍ୱାସ ନ ଯାଅ ଦେଖି ତାଙ୍କ ପ୍ରେମାଶୟ ।୧।
ଖରାପ ହୋଇଲେ ରାଜା ଦଶରଥ ଅବର ପଣ୍ଡୁଙ୍କ ସୁତ ।
ଖରେ ରାମଚନ୍ଦ୍ର ବନକୁ ପ୍ରେରିତ କୌରବେ ହୋଇଲେ ହତ ।୨।
ଗଜ ପର ମତ୍ତ ନ ହେବ ଉଦ୍ଧତ ହେଲେ ଅଛି ପରମାଦ ।
ଗର୍ବେ ବଦାନ୍ୟ ରକ୍ଷିବାକୁ ସିଦ୍ଧି ହେଲା ନଷ୍ଟ ତା ସମ୍ପଦ ।୩।
ଘରେ ପରନାରୀ ପରପୁରୁଷଙ୍କୁ ନ ରଖିବ କଦାଚନ ।
ଘଟିବ ଅନର୍ଥ ବିରାଟେ ପାଣ୍ଡବ ପରି ମନେ ଏବେ ଘେନ ।୪।
ଅପ୍ରୀତି ବଚନ ନ କହିଲେ ଜାଣ ସଭାରେ ମଙ୍ଗଳ ତାର ।
ଅର୍ଥ ମିତ୍ର ଭେଦ ନ ଥିବଟି ତାକୁ ବୋଲାଇବ ପୁଣ ବର ।୫।
ଚଞ୍ଚଳ ନକର ସୁସ୍ଥିର ମନକୁ କାଳେ ହେବ ଯଶମାନ ।
ଚନ୍ଦ୍ରବଂଶ ଜାତ ଧର୍ମଙ୍କର ସୁତ ଗତିକି ମନରେ ଘେନ ।୬।
ଛଦ୍ମବେଶ ସଦା କପଟି ରୂପର କେବେ ଧାରଣ ନ କର ।
ଛଳ ବୋଲାଇଲେ ବୃନ୍ଦାବତୀ ହେଲୁ ହେରୁଙ୍କର ଚକ୍ରଧର ।୭।

ଜଗତେ ଜନନୀ ଜନକ ସମାନ ନାହିଁ କେହି ଗୁରୁ ବର ।
ଜାଣି ରଖିଲେଟି ସେବକୁ ସୁଗତି ଦେଇ ଧ୍ରୁବ ରାମଙ୍କର । ୮ ।
ହିଂଅ ପୁଅ ନାତି ମାନଙ୍କରେ ହିତ କରବ ଯେ ଜନ ସ୍ନେହ ।
ଜିଣିବ ଜୀବ ଏ ଭବ କୂପରେ ଏଥିରେ ନାହିଁ ସନ୍ଦେହ । ୯ ।
ଜୁଆଁ ନୁହେ ଯେନ ଅନେ ବସ୍ତ୍ରଜଳ ଅଛି କପୋତର କଥା ।
ନିମିଷ ମାତ୍ରକେ ହରାଇଲା ପ୍ରାଣ କୁଟୁମ୍ବ ଲୋଭରେ ବୃଥା । ୧୦ ।
ଧର୍ମକୁ ବାଞ୍ଛୁଛ ତିନି ଭୁବନରେ ସତ୍ୟ ପ୍ରତି ଧର୍ମ ନାହିଁ ।
ଜୋ ସଂଜ୍ଞା ସତ ଦାରା ତେଜିଲେଟି ହରିଶ୍ଚନ୍ଦ୍ର ସତ୍ୟପାଇଁ । ୧୧ ।
ଠିକଣା କ କର ପର ସ୍ଥାନ କେବେ ନ ଛାଡ଼ିବ ପୂର୍ବସ୍ଥାନ ।
ଠିକ କଥା ଏହି ଉଦ୍ଧବ ପଦବୀ ନଷ୍ଟ ହେବ ତତକ୍ଷଣ । ୧୨ ।
ଡ଼କାଇତକର୍ମ ପର ଏହେ ହୀନ ନାହିଁ ଜଗତରେ ଜାଣ ।
ତାଙ୍କର ପରରେ ଜାଣି ଜାଣି ତହିଁ ପଡ଼ନ୍ତି ସକଳ ଜନ । ୧୩ ।
ଭୁଲାଇବ ନାହିଁ କେବେ ନିଜମନ ଦେଖି କାମିନୀ ଲାବଣ୍ୟ ।
ଯାଦେ ନଷ୍ଟ ହେଲା ବଂଶ ସବଂଶେ ବୁଝି ଏବେ ସୁଖଗଣି । ୧୪ ।
ଅର ଯଦି ମିତ୍ର ଖୁବ ଅତରେ ତାସହିଁ ନକର ପ୍ରୀତି ।
ନଷ୍ଟ ଘଟିବ ଦୃଷ୍ଟି ରଖ ଏବେ ବରାଡ଼ି ପକ୍ଷୀଙ୍କ ପ୍ରତି । ୧୫ ।
ଭୃଣଠାରୁ ନୀଚ ଗରୁ ପର ସହିବାକୁ ମହତ ବର୍ଗର ।
ଚିହ୍ନ ଭୁବନରେ ପୂଜାକୁ ଲଭନ୍ତି ଜାଣନ୍ତି ଏପରି ଚରି । ୧୬ ।

ଧନ ଧନ କରେ ଚକ୍ଷୁକୁ ଯେ ଜନ ଦେଖି ପରର ଅଗମ ।
ତାର ଚକ୍ଷୁରେ ବୁଝ ବୃଥଜନ ଏହିଁ ବୈଭବ-ପ୍ରେମ । ୧୭ ।
ଦରିଦ୍ରରେ ଧନ ଯେ କରିବ ଦାନ ତାହାର ନିର୍ମଳ ଯଶ ।
ଦାମ୍ଭିକ ଲୋକଙ୍କୁ ଯାଚେ ଦିଆଇଲେ ଜାତହୁଏ ଅପଯଶ । ୧୮ ।
ଧନ୍ୟ ତା ଜୀବନ ଯେଉଁ ପରଧନ ପରନାରୀ ତ୍ୟାଗୀ ଜାଣ ।
ଧରଣୀରେ ଏହି ଧର୍ମରୁ ଭୀଷ୍ମଙ୍କୁ ଅଧୃତିଦୋଷ ଖଣ୍ଡନ । ୧୯ ।
ନଳ, ବଳି, ଜନକ, ବାଣ, ବେଣୁ, ଶିବି ଯେତେ ଚକ୍ରବର୍ତ୍ତୀ ଥିଲେ
ନାହିଁ ତାଙ୍କ ଦେହ କୀର୍ତ୍ତି ମାତ୍ର ଅଛି ବସୁର ପଞ୍ଚତ୍ୱ ଲଭିଲେ । ୨୦ ।
ପର ଠାରେ ହିଂସା ନ କରିବ କେବେ ଦୟାଥିବ ସର୍ବ ଭୂତେ ।
ପରମ ପୁରୁଷ ଏମନ୍ତ ନରକୁ ପ୍ରାପତି ହୁଅଇ ସତେ । ୨୧ ।
ଫୁଲାପଣ କେବେ ନ କହିବ ଜାଣ ବଳ ଯଦି ଦେହେ ନାହିଁ ।
ଫାଲଗୁନ ସହ ଉତ୍ତରକୁମାର ପ୍ରଶଂସା ହୁଏ କୁରୁଠାଇଁ । ୨୨ ।
ବଳ, ବିଦ୍ୟା, ବୁଦ୍ଧି, ବଚନ, ବିଭବ ଯା ଠାରେ ଏପଞ୍ଚ ଥାଇ ।
ବିଶେଷରେ ସେହି ଗଉରବ ପାଏ ଏଥିରେ ସଂଶୟ ନାହିଁ । ୨୩ ।
ଭାର୍ଯ୍ୟା ଭର୍ତ୍ତା ଯଦି ଏକ ମନା ହୋଇ ପ୍ରେମେ କାଳ କାଟୁଥିବେ ।
ଭିକ୍ଷୁକ ହେଲେହେଁ ସଦା ତାଙ୍କେ ସୁଖି ମନୋଦୁଃଖ ନାହିଁ କେବେ ୨୪
ମନେ ହେତୁକର ଦ୍ରୌପଦୀଙ୍କ ସଙ୍ଗେ ବନେ ପଣ୍ଡୁସୁତ ମାନେ ।
ମୂଳ ଫଳ ଆହାରଣ କରି ନିତି ବଞ୍ଚୁଥାନ୍ତି ସେ ଯତନେ । ୨୫ ।

ଯେ ଗୁରୁଜନରେ ପ୍ରତିବାଦ କରେ ନଷ୍ଟ ହୁଏ ତତକ୍ଷଣ ।
ଯଦୁବଂଶ ହତ ହେବାର ଚରିତ ମନେ ଚିନ୍ତ ଜାଣ ଜନ । ୧୬ ।
ରାଜା, ଧନୀ, ବୈଦ୍ୟ ଅବର ପଣ୍ଡିତ, ନଦୀ, ଯେଉଁ ଠାରେ ନାହିଁ ।
ରହିଲେ ସେଠାରେ ସୁଖ ଲେଶ ନାହିଁ ଚାଣକ୍ୟ ପଣ୍ଡିତ କହି । ୧୭ ।
ଲଲାଟରେ ଯାହା ଲେଖା ହୋଇଅଛି ଅନ୍ୟଥା କି ଏ କରିବ ।
ଲଭିଲେ କଷଣ ଦଶରଥ ସୁତ ଅବର ନଳ ପାଣ୍ଡବ । ୧୮ ।
ଦୟାବନ୍ତ ରାଜା ହେଲେ ପ୍ରଜାଗଣ ସକଳ ସୁଖ ଲଭନ୍ତି ।
ବିଶେଷରେ ଏହି ଗୁଣରୁ ପ୍ରଶଂସା ପାଇଲେ ଶ୍ରେଷ୍ଠ ନୃପତି । ୧୯ ।
ଶାସ୍ତ୍ରଙ୍କ ବଖାଣ ଲଭିବା ଉପାୟ ଅଛି ଜଗତରେ ଯେତେ ।
ଶିକ୍ଷତାରୁ ହେଳ କରନ୍ତି ଯେତକ ନ ଜାଣନ୍ତି ମୂର୍ଖ ମତ । ୨୦ ।
ଗଙ୍ଗ ପତିପ୍ରୀତି ଅଟଇ ଯେନର ସେ ପାଏ ପରମଧାମ ।
ସୁଗତି ଲଭିଲା ବ୍ରାହ୍ମଣ-କୁମାରୀ ଅନ୍ୟେ କର ଏ ଧରମ । ୨୧ ।
ଷଟପଦି ଯେଉଁ ପରରେ ଭ୍ରମଇ ପଦ୍ମଫୁଲ ବାସ ପାଇ ।
ଷୋଡଶ ବୟସୀ ଯୁବତୀଙ୍କ ଦେଖି ଯତି ମନ ଟଳି ଯାଇ । ୨୨ ।
ହରି, ହର, ବ୍ରହ୍ମା ପୁଣି ଦିନକର ଲଭନ୍ତି କର୍ମ କଷଣ ।
ହରଷରେ ଏଣୁ ସେବ କର୍ମ ପାଦେ ସେହିଟି ମୂଳ କାରଣ । ୨୩ ।
କ୍ଷିତିପତି ଯେବେ ବିବେକ ନ ହେବ ଖଳଙ୍କ କଥା ଶୁଣିବ ।
କ୍ଷିତିପାଳ ପଦ୍ମନାଭ ଦେବ କହେ ତହିଁ ବାଦ ନ କରିବ । ୨୪ ।

# ରାମଚନ୍ଦ୍ର ଜଣାଣ ॥

ରାଗ ମଙ୍ଗଳଗୁଜ୍ଜରୀ ।

ଜୟ ଜୟ ରାମ ଜଗତ ଅଭିରାମ ।
ହଂସ ବଂଶତିଳକ ଦୁର୍ବାଦଳ ଶ୍ୟାମ ॥ ୧ ॥
ଅଯୋଧ୍ୟା ନରପତି ଦଶରଥ ସୁତ ।
କୌଶଲ୍ୟା ଗର୍ଭଜାତ ଏକ ପତିବ୍ରତ ॥ ୨ ॥
କୋଟିମାରଦରପଦଳନ ଶ୍ରୀମୁଖ ।
ଯାହା ବଳେ ରକ୍ଷିତ ବିଶ୍ୱାମିତ୍ରମଖ ॥ ୩ ॥
ତାଡକ ବାଟେ ନାଶି ଅହଲ୍ୟାତାରକ ।
ଶିବଧନୁ ଭଂଜିଲ ସୀତାଙ୍କ ନାୟକ ॥ ୪ ॥
ପରଶୁରାମ ଗର୍ବ ଖରବ କାରକ ।
ଅଯୋଧ୍ୟା ବାସିଙ୍କର ଆନନ୍ଦବର୍ଦ୍ଧକ ॥ ୫ ॥
ପିତୃ-ସତ୍ୟ-ପାଳକ ଅହଲ୍ୟାତାରକ ।
ସୁରଅନବାଶକ କୋଦଣ୍ଡ ଧାରକ ॥ ୬ ॥

ନୀଳୋତ୍ପଳ କାନ୍ତି ନିନ୍ଦିତ କଳେବର ।
ମନ୍ଦାର ପ୍ରବାଳଙ୍କୁ ଜିଣିଛୁ ଅଧର । ୭ ।
ଗୋଟିଙ୍କର କୋଟିଏ ଶଶଧର କାନ୍ତି ।
ତୁଳନାରେ ବଳଇ ଶ୍ରୀମୁଖର ଜ୍ୟୋତି । ୮ ।
ଖଣ୍ଡଚନ୍ଦ୍ର ଦର୍ପଣ ଦରପଣ ଭଳି ।
ଗଣ୍ଡସ୍ଥଳ ଝଳଝଳ ନିରନ୍ତର ଭଳି । ୯ ।
ବାଳ ଅଳି ନିନ୍ଦିତ ଅଛଇ ଭୃବଲ୍ଲୀ ।
ନୟନ ଖଞ୍ଜରୀଟ ପଦ୍ମଫୁଲ ଭଳ । ୧୦ ।
ସଦୟ ହୃଦୟ ଦୀନ ଆର୍ତ୍ତିନାଶକ ।
ସକଳ ଗୁଣଧାମ ଅଭୟ ଦାୟକ । ୧୧ ।
ଅଟେ ଅନୁପମ ବାଳ ପରାଣବନ୍ଧୁ ।
ସୁଗ୍ରୀବ ପ୍ରିୟକାରୀ ସେହୁ ଜଗତପିତା । ୧୨ ।
ହନୁମାନ ମାନସ ଉଲ୍ଲାସ କାରକ ।
ଅମର ନର ସେହୁ ଦୁଷ୍ଟ ନିବାରକ । ୧୩ ।
ଖରଦୂଷଣାସୁର ବୀର ସଂହାରକ ।
ତ୍ରିଶିରା ଦୈତ୍ୟକୁଳ ଗରବ ଚୂରକ । ୧୪ ।
ରତ୍ନାକର ପତିଙ୍କ ମମତା ଖଣ୍ଡନ ।
ସମୁଦ୍ର ମଧ୍ୟେ ବନ୍ଧ କଲେହେ ବନ୍ଧନ । ୧୫ ।

ବନ୍ଦୀଷଣ ଘ୍ରାଣଶ ରୂପ ଦୂରକର ।
ଶରଣ ପଦନ୍ତେ ରଖିଲେ ଦୈତ୍ୟ ଅରି । ୧୬ ।
ବଂଶାଘ ବଣବନ.ଦହନେ ପାବକ ।
ଅଟେ ରାବଣାରି ସନ୍ତଜନ ପାଳକ । ୧୭ ।
ସୁରାନନ୍ଦ ବର୍ଦ୍ଧକ ଦୈତ୍ୟ କୁଳ କାଳ ।
ମାରୁତ ବଳାଗ୍ରକ ଅଟନ୍ତି ବୀର ବର । ୧୮ ।
ରାଜମୁକୁଟମଣି କୋଶଳାଧିପତି ।
ପାପ ରାଶି କୁମ୍ଭୀ ଅଟେ ପଶୁପତି । ୧୯ ।
ରାମ ନାମାବଳୀ ଏବ୍ରତ ବିରଚନ ।
ଦୁର୍ଯ୍ୟଜନ ଜ୍ଞାନ ଅଲ୍ପ ଏ ବିମଣ । ୨୦ ।
ବନ୍ଦେ ଶ୍ରୀ ଗୌରଚନ୍ଦ୍ର ଗଜପତିଦେବ ।
ରାମ କୃପାରୁ ମୁକୁଳିବ ବାସୁଦେବ । ୨୧ ।



# ଶ୍ରୀ କୃଷ୍ଣ ସ୍ତବ ।

## ରାଗ ମଙ୍ଗଳଗୁଜ୍ଜରୀ ।

ଜୟ ଜୟ ଯଶୋଦା ସୁତ ହୃଷିକେଶ ।
ଯଦୁକୁଳ ତିଳକ ରାଧିକା ପ୍ରାଣେଶ ॥ ୧ ॥
ନନ୍ଦାତ୍ମଜ ସୁନ୍ଦର ଜୟ ବାସୁଦେବ ।
ବୃନ୍ଦାରକ ବନ୍ଦିତ ଅଦ୍ଭୁତ କେଶବ ॥ ୨ ॥
ବୃନ୍ଦାବନ ଚାରକ ଗୋକୁଳ ପାଳକ ।
ରାସ-ବିନୋଦିଆ ଭକତ ରକ୍ଷକ ॥ ୩ ॥
ହେ ଗୋବର୍ଦ୍ଧନ ମାଧବ ଶ୍ରୀମଧୁସୂଦନ ।
ଗୋପିଙ୍କ ମନ-ହରା ହେ ନନ୍ଦନନ୍ଦନ ॥ ୪ ॥
ଅହେ ବେଣୁପାଣି ଜମୁନା ତଟଚର ।
କଂସ ବିନାଶକ ମୁକୁନ୍ଦ ମୁରାରି ॥ ୫ ॥
ପୂତନା ପ୍ରାଣହନ୍ତା ପୀତାମ୍ବର ଧାରୀ ।
ଷଣ୍ଢ-ମୁଣ୍ଡ-ମୋଡ଼ା ହେ କମଳା ଭୋର ॥ ୬ ॥
ଯମଳା ଅର୍ଜୁନ ଭଞ୍ଜନ କାରକ ।
କଂସ-ବଂଶ ଦହନେ ଅଟହେ ପାବକ ॥ ୭ ॥

ବାଦବ-ଗର୍ବଗଞ୍ଜା ଗୋବର୍ଦ୍ଧନଧାରୀ ।
ଦାବାନଳ ଭକ୍ଷକ କେଶି ପ୍ରାଣହାରୀ ॥ ୮ ॥
ଶରଦ ଚନ୍ଦ୍ରକାନ୍ତ ଦଳନବଦନ ।
ଘନଶ୍ୟାମ ଚରଣ କାଳିୟ ମର୍ଦ୍ଦନ ॥ ୯ ॥
ମକର କୁଣ୍ଡଳିଆ କାଇଚ ମାଳିଆ ।
ତ୍ରିଭଙ୍ଗ ମେଖଳିଆ ମୟୂର ଚୂଳିଆ ॥ ୧୦ ॥
ରାଧିକା ମୁଖପଦ୍ମ ଚୁମ୍ବନେ ମଧୁପ ।
ଜୟ ଜଗନ୍ନାଥଦେବ ମୋହନ ସ୍ୱରୂପ ॥ ୧୧ ॥
କୁମ୍ଭି ଅରାତଦନ୍ତା କୁମ୍ଭିର ଛେଦକ ।
କମ୍ବୁଚକ୍ରଧାରୀ ଦେବ ଅଂରଷ ରକ୍ଷକ ॥ ୧୨ ॥
କୁବୁଜା କୁଚମର୍ଦ୍ଦା ଅଷ୍ଟମଲ୍ଲ ମରା ।
ମଥୁରା ନାରୀଙ୍କର ସୁଖଦ ପସରା ॥ ୧୩ ॥
କୃଷ୍ଣା ମାନ-ରକ୍ଷକ ଅଟେ ପାର୍ଥସୂତ ।
ଅନନ୍ତ ଶେଷଶଯ୍ୟାଇ କବାଯ ଯବରୂତ ॥ ୧୪ ॥
ଅଟେ ଦମ୍ଭାସୁର ମେଟକ କୁମ୍ଭକ ।
ପଞ୍ଚେନ୍ଦ୍ର ନୟନ ଚାପକ୍ରୀଡା ଲୋଲ ॥ ୧୫ ॥
କୁବଳୟ ହାରକ ନାରକା ନାଶକ ।
ଘାରପ ଉବଗବ ଖରବ କାନ୍ତକ ॥ ୧୬ ॥

ଶଙ୍ଖାସୁରଙ୍କ ମାରକ ବେଦ ଉଦ୍ଧାରକ ।
ବରାହ ରୂପେ ଦନ୍ତେ ପୃଥ୍ୱୀ ଧାରକ । ୧୬ ।
କଳଙ୍କ ଅବତାରେ ନାଶଂ ଦୁଷ୍ଟ ଜନ ।
ଶାରଙ୍ଗ ଧନୁର୍ଦ୍ଧର ଶ୍ରୀବତ୍ସଲାଞ୍ଛନ । ୧୭ ।
ଗୋଧୂଳି ଧୂସରଧୂ କଦମ୍ବ ମୂଳଅ ।
କୁନ୍ତଳ ପାଳଅ ଶ୍ୟାମଳ ବରଣଧୂ । ୧୮ ।
ନୃସିଂହ ରୂପରେ ହିରଣ୍ୟ ବଦାରି ।
ପ୍ରହ୍ଲାଦ ଆନନ୍ଦ ବର୍ଦ୍ଧନକାରୀ । ୧୯ ।
ପରଶୁରାମ ରୂପେ କ୍ଷତ୍ରିୟ ବିନାଶି ।
ରାମ ଅବତାରେ ରାବଣକୁ ଧ୍ୱଂସି । ୨୦ ।
ବାମନ ଅବତାରେ ବଳିଙ୍କ ଚପିଲ ।
ଅସୁର ଗୁରୁ ନେତ୍ରେ କୁଶକୁ ଗୁଞ୍ଜିଲ । ୨୧ ।
ଜୟଶ୍ରୀ ପଦ୍ମନାଭ ପତିତ ପାବନ ।
ନୀଳାଚଳ ନିବାସି ଜଗତ କାରଣ । ୨୨
ଜୟ ଜଗବନ୍ଧୁ ଦେବକୀ ପ୍ରାଣଧନ ।
ଜୟଜୟ ଉପେନ୍ଦ୍ର କରୁଣା ନିଧାନ । ୨୩ ।
ବଳଭଦ୍ର ସୋଦର ପ୍ରଦ୍ୟୁମ୍ନ ଜନକ ।
ପାପରାଶି ତୁଳାକୁ ଅଟେଦେ ପାବକ । ୨୪ ।

ମୁନିଜନ ମାନସ ସରୋବର ହଂସ ।
ହଂସଜା ତଟେ ସଦା କରନ୍ତେ ନିବାସ ॥ ୧୫ ॥
ହେ ରୁକ୍ମିଣୀ-ରମଣ ମୁକତି ପସରା ।
ଅଭର ଯୁବତିଙ୍କ ଲୋଟବାସଚୋରା ॥ ୧୬ ॥
ଦାଲୁ ଶିଶୁପାଳଙ୍କ ଶକଟା ବଧକାରୀ ।
ଗୋକୁଳ-ରକ୍ଷକ ଗୋବର୍ଦ୍ଧନଧାରୀ ୧୭
କହନ୍ତେ ଶ୍ରୀ ଗୌରଚନ୍ଦ୍ର ଗଜପତି ଦେବ ॥
ଭବଭାନ୍ତ ଛୁଟେଇ ପଠନେ ଏତୁବ ॥ ୧୮ ॥



ରାଗ ଚକ୍ରୀ ॥

ଅଜ ଅନନ୍ତ ଚକ୍ରଧର । ଅଚ୍ୟୁତ ବ୍ରହ୍ମ ନଟବର ॥ ୧ ॥
ଅଚିତ ଜନ କଷ୍ଟ ଧ୍ୱଂସ । ଅମର ବର ନରହଂସ ॥ ୨ ॥
ଖଚର ଈଶ୍ୱର ଆସନ । କନକ ବରଣ ବସନ ॥ ୩ ॥
ତପନ ବଂଶ ଅଳଂକୃତ । ମଙ୍ଗଳ ପଦ ଯେବେ ବ୍ରତ ॥ ୪ ॥
ରଙ୍ଗ ଅଧର ପଦ୍ମ ଅକ୍ଷ । ଖଳମର୍ଦ୍ଦନ ରକ୍ତ ଚକ୍ଷ ॥ ୫ ॥

ଅ,ବ,ଗ, ବର୍ଣ୍ଣି କୃଷ୍ଣଚନ୍ଦ୍ର । ଅବ୍ଜ ବଦନ ଅଘକ୍ଷୟ ॥ ୬
କହନ୍ତି ନର୍ତ୍ତ ଗଜ ଇଶ । ଭଜନ ପୂରଣର ଦୃଶ ॥ ୭ ॥

ରାଗ ମଙ୍ଗଳ ॥

ପରାପର ବ୍ରହ୍ମଙ୍କୁ କର ପରହର ।
ଇଚ୍ଛ ତମ ଛାଡ଼ି ସତ୍ୟ ଗୁଣକୁ ଆଦର ॥ ୧ ॥
ଦାରୁଣ ଇନ୍ଦ୍ରିୟଗଣେ କୁଦ୍ଧ ବଶୀଭୂତ ।
ଯୋଗେଶ୍ୱର ନାମ ଧ୍ୟାନ କରନ୍ତେ ସତତ ॥ ୨ ॥
ଗଣ୍ଡ ଧନପର ଏବେ ଚଢ଼ି ଲୋଭକର ।
ମନ ବିଷୟରେ ଜଡ଼ି ନୁହ ଛାରଖାର ॥ ୩ ॥
ନୟନରେ ତାହାଙ୍କର ରୂପ ସଦା ଦେଖ ।
ପରମାତ୍ମା ପ୍ରସାଦରେ ମିଳେ ସର୍ବସୁଖ ॥ ୪ ॥
ରିପୁ ଷଡ଼ ଜଗିଛନ୍ତି ଶରୀର ଭିତରେ ।
ହରିନାମ ଖଡ଼ଗରେ ନାଶ ତାଙ୍କୁ ଭଲେ ॥ ୫
ରକ୍ଷା ହେବ ଜଗତରୁ ପାପାବର୍ତ୍ତଛଳେ ।
ସଂହାରହେବ କହେ ଅନ୍ତରଲିପିରେ ॥ ୬ ॥